# ଗାୟକ ଘୋଡ଼ାଚଢ଼ା

## ପ୍ରଶ୍ନ ଉତ୍ତର

# ବୃହତ୍ ପଟୋଳ

ବା

## ରସଗୋଲା

( ପ୍ରଥମ ଭାଗ )

ରଚନା—ଶ୍ରୀ ଶ୍ୟାମସୁନ୍ଦର ନାୟକ

( ନୂତନ ମୁଦ୍ରଣ )

ପ୍ରକାଶକ ଓ ପ୍ରାପ୍ତିସ୍ଥାନ—ଧର୍ମଗ୍ରନ୍ଥ ଷ୍ଟୋର

ପରିଚାଳକ—ଶ୍ରୀ ବଦ୍ୟାଧର ସାହୁ

ଅଲଣା ବଜାର, କଟକ-୨

ଫୋନ୍ ନମ୍ବର : ୬୦୩୨୯୭

ମୂଲ୍ୟ—ଚାରିଟଙ୍କା ମାତ୍ର

## ପ୍ରଶ୍ନ ଉତ୍ତର

# ବୃହତ୍ ପଚ୍ଚୋଳ ବା ରସଗୋଲା

—ଃ*ଃ—

ଜୟ ଜୟ ଗଣନାଥ ଗଉରୀ ନନ୍ଦନ
କପୋଳେ ସିନ୍ଦୁର ଶୋଭା ବରଣ ବଦନ ।୧।
ତୁମ୍ଭ ପୂଜା ହୁଏ ଦେବଗଣଙ୍କ ଅଗ୍ରରେ
ତୁମ୍ଭନାମ ସକଳ ବିଘ୍ନକୁ ନାଶ କରେ ।୨।
କର୍ଣ୍ଣରେ କୁଣ୍ଡଳ ଦେନ ଶୋଭେ ନିରନ୍ତର
ପୃଥୁଳ ଉଦର ଦେବ ମହା ଯୋଗେଶ୍ୱର ।୩।
ବିଦ୍ୟାର୍ଥୀ ଲୋକ ତୁମ୍ଭର ନାମକୁ ସ୍ମରଲେ
ବିଦ୍ୟା ବୁଦ୍ଧି ଲଭ ତାର ହୁଅଇ ବ୍ୟଗ୍ରରେ ।୪।
ଏ ଅଧମ ହୀନଜନ କରୁଛି ଗୁହାରି
ମୋର ମନସ୍କାମ ବାରେ ଦିଅ ପୂର୍ଣ୍ଣ କରି ।୫।
ଜୟ ଜୟ ଜୟ ମାଗୋ ଦେବୀ ସରସ୍ୱତୀ
ତୁମ୍ଭ ଚରଣେ ମୋହର ଅଶେଷ ପ୍ରଣତି ।୬।
ବାକ୍ୟ ଦେବୀ ବିଦ୍ୟାବୁଦ୍ଧି ଦିଅ ମୋ ହୃଦରେ
ଏହି ନିବେଦନ ମୋର ତବ ଶ୍ରୀପୟରେ ।୭।
ମୋର କଣ୍ଠେ ବସି ପଦ କରିବ ବଖାଣ
ଉପହାସ ଯେସନେ ନୋହିବ ଏହି ସ୍ଥାନ ।୮।
ସଭାଜନମାନେ ଏବେ ଶୁଣ ମନ ଦେଇ
ଗାୟକ ଭାଇଙ୍କୁ କଚ୍ଛି ପଚ୍ଛରିବ ମୁହିଁ ।୯।

ସଦଗୁରୁ ସେବା ଯେବେ ସେହୁ କରଥିବେ
ତେବେ ସିନା ଏ ସ୍ଥାନରେ ସବୁ କହିଦେବେ ।୧୦।
ନୋହିଲେ ମୂକଙ୍କ ପରି ହୋଇବେ ମଉନ
ଆଜଠାରୁ ଛାଡ଼ିଦେବେ ଗାୟକ ବିଧାନ ।୧୧।
ଶୁଣ ହେ ଗାୟକ ଭାଇ ପଚାରୁଛି ଯାହା
ଜଗତ ଭବରେ ସବୁ କହିଦେବ ତାହା ।୧୨।
ଏ ସଭାରେ ପୂରିଛନ୍ତି ସାଧୁ ସୁଜ୍ଞଜନ
ଶୁଣିକରି ସନ୍ତୋଷ ହୋଇବ ତାଙ୍କ ମନ ।୧୩।
୧ । ବଳୁଆ କାହିଁପାଇଁ ନନା ବୋଲୁଥାନ୍ତି
୨ । ବାଘ ମାମୁଁ କହି କମା ପିଲାଙ୍କୁ ଡରାନ୍ତି ।୧୪।
୩ । ଭବରେ ଅଲଗା କମା ଚକୁଆ ଚକୋଇ
୪ । ବେଙ୍ଗର ଲାଙ୍ଗୁଡ଼ କେଉଁ କାରଣରେ ନାହିଁ ।୧୫।
୫ । କାହା ଶାପେ ଚୁଚୁନ୍ଦରା ଦେହ ଗନ୍ଧ କରେ
୬ । କେ ରଖିଲେ ମଣି ନେଇ ସର୍ପ ମସ୍ତକରେ ।୧୬।
୭ । ମାମୁଁ ଶବ୍ଦ ଚନ୍ଦ୍ରଠାରେ କମାଇଁ ରହିଲା
୮ । ଶଶା ଚିହ୍ନ କିଏ ଆଣି ତା ଅଙ୍ଗରେ ଦେଲା ।୧୭।
୯ । ଷଡ଼ଙ୍ଗୀ କହନ୍ତି କୁକୁରକୁ କାହିଁପାଇଁ
୧୦ । ଶାଳଗ୍ରାମ କେଉଁଠାରେ ଜନମ ଲଭଇ ।୧୮।
୧୧ । ଲାଜକୁଳୀ ଗଛକୁ ଛୁଇଁଲେ ତତ୍‌କ୍ଷଣେ
ଝାଉଁଳି ପଡ଼ଇ ସେହୁ କେବଳ କାରଣେ ।୧୯।
ପ୍ରଥମରେ ଏତେ କଥା କହିବଅ ଭାଇ
ଶ୍ରୀଗୁରୁ ପ୍ରସନ୍ନେ ଶ୍ୟାମସୁନ୍ଦର କହଇ ।୨୦।

—ଃ*ଃ—

## ଉତ୍ତର

ଶୁଣ ହେ ଗାୟକ ଭାଇ ପଚାରିଲ ଯାହା
କହିବାକୁ ଇଚ୍ଛା କରୁଅଛି ମୋର ତାହା ।୧।
ଏ ମହାସନ୍ଧି ବିଧାନ ଏ ସ୍ଥାନରେ ଆଣି
କେବଳ ଏତକ ମାତ୍ର ଥିଲ ତୁମ୍ଭେ ଜାଣି ।୨।
ତେଣୁକରି ଚରଚର ହୋଇଣ ଆଗରୁ
ପଚାରିଲ ସେବିଷ୍ଟ କି ନାହିଁ ସଦଗୁରୁ ।୩।
ସେହେତୁ କହିବାକୁ ମୁଁ ହେଲି ଉତ୍କଣ୍ଠିତ
ମିଳୁବା ନ ମିଳୁ ଶାସ୍ତ୍ର ବିଧାନର ଅର୍ଥ ।୪।
ସଭାଜନଙ୍କୁ ଦାସ୍ତିନ୍ନ କରୁଅଛି ମୁହିଁ
ମୋର କଥା ଶୁଣ ଏବେ ଏକଚିତ୍ତ ହୋଇ ।୫।
ପ୍ରଥମରେ ଏ ସଭାରେ ଗାୟକ ଭଜନ
ବଲୁଆଙ୍କୁ ନନା ବୋଲି କରିଲେ ପ୍ରଶନ ।୬।
୧ । ସେ କଥା କହୁଛି ଏବେ ଶୁଣ ମନ ଦେଇ
ଆଦ ସତ୍ୟଯୁଗ କଥା କେବେ ମିଥ୍ୟା ନୋହି ।୭।
ଏକ ବ୍ରହ୍ମା ବିଶ୍ୱକେତୁ ନାମେ ସେ କାଳରେ
ତପ କରୁଥିଲେ ଯାଇ ଗଣ୍ଡକୀ କୂଳ ସରେ ।୮।
ବିଷ୍ଣୁଙ୍କର ପାଦପଦ୍ମେ ଲଗାଇଣ ଧ୍ୟାନ
ଏକାଗ୍ର ଭାବରେ ବସିଥିଲେ ଏକ ଦିନ ।୯।
ବିବର୍ତ୍ତ ନାମରେ ଏକ ବ୍ରାହ୍ମଣ ସେ କାଳେ
ତାର ପତ୍ନୀ ପୁଲୋମାକୁ ଘେନି ସଙ୍ଗତରେ ।୧୦।
ହାସ୍ୟ ପରିହାସ ଭାବେ ସେହୁ ବେନିଜନ
ସେହି ପଥଦେଇ କରୁଥିଲେ ସେ ଗମନ ।୧୧।
ବିଶ୍ୱାକେତୁ ବ୍ରହ୍ମା ତହିଁ ତପ କରୁଥିଲେ
ଏତେବେଳେ ଏହି ଦୁହେଁ ପ୍ରବେଶ ହୋଇଲେ ।୧୨।

ବ୍ରହ୍ମାଙ୍କୁ ଦେଖିଣ ବହୁ ଉପହାସ କଲେ
ବେଦଜନେ ନେତ୍ରପ୍ରାନ୍ତେ ଠାରାଠାରି ହେଲେ ।୧୩।
ଏହା ଜାଣି ବଶିଷ୍ଠଙ୍କୁ ବ୍ରହ୍ମା କୋପ କଲେ
ଶୃଗାଳ ଉଦରେ ଜନ୍ମ ହୁଅସି ବୋଇଲେ ।୧୪।
ଅମେଧ ଭକ୍ଷିଣ ନିଶି ଦିବସ ରହିବ
ମଣିପୁରେ ପତିପତ୍ନୀ ଏମନ୍ତ ହୋଇବ ।୧୫।
ପୂର୍ବର ଶାପ ଏମନ୍ତ ଭବରେ ଅଛଇ
ଶୁଣ ତାଙ୍କ ଜନ୍ମଭବ ଦେଉଅଛି କହି ।୧୬।
ଏକଇ ବ୍ରାହ୍ମଣ ଥିଲା ଶାକଲ୍ୟ ଦ୍ୱୀପରେ
ଦାନ ଧର୍ମ ବହୁତ ସେ କରଇ ସଂସାରେ ।୧୭।
ତାର ନାମ ଜଗତରେ ହେବାରୁ ପ୍ରକାଶ
ତା ନାମ ବଢ଼ିବା ଇଚ୍ଛା କଲେ ଶଚୀ ଈଶ ।୧୮।
ବିଶ୍ୱାମିତ୍ର ଋଷିଙ୍କି ତା ପାଶକୁ ପେଷିଲେ
ତା ଚିତ୍ତ ପରୀକ୍ଷା କର ବୋଲିଣ କହିଲେ ।୧୯।
ମୁନି ଯାଇ ପ୍ରବେଶନ୍ତେ ଭବନେ ତାହାର
ଦେଖିଲା ମାତ୍ରକେ କଲା ବହୁ ସମାଦର ।୨୦।
ବୋଇଲା ହେ ମହାମୁନି କେଉଁ କାରଣେ
ବିଜୟ କଲ ମୋ ପୁରେ ଶୁଭ ଆଗମନେ ।୨୧।
ତାହା ଶୁଣି ବିଶ୍ୱାମିତ୍ର କହନ୍ତି ବଚନ
ମୃଗ ମାଂସଠାରେ ଶ୍ରଦ୍ଧା କଲାଛି ମୋ ମନ ।୨୨।
ତାହା ରନ୍ଧନ ଭୋଜନ ଦେଲୁ ଯେବେ ମୋତେ
ଭୁଞ୍ଜିଣ ସନ୍ତୋଷ ମୁହିଁ ହୋଇବି ନିଶ୍ଚିତେ ।୨୩।
ଏହା ଶୁଣି ଦ୍ୱିଜବର ଏକ ଶବରକୁ
ମୃଗମାଂସ ପାଇଁ ଶୀଘ୍ର ପ୍ରେଷିଲା ବନକୁ ।୨୪।

ଇନ୍ଦ୍ର ମାୟା ଯୋଗେ ସେହୁ ମୃଗ ନ ପାଇଲା
ଭ୍ରମି ଭ୍ରମି ବନଘୋର ନିରାଶ ହୋଇଲା ।୨୫।
ଏଣେ ଇନ୍ଦ୍ର ଏକ ଦ୍ୱିଜ ବେଶରେ ତତ୍‌କ୍ଷଣ
ନରମାଂସ ଗୁଡ଼ିଏ ନିଜ କରରେ ଘେନିଣ ।୨୬।
ଶବରକୁ ବୋଇଲା ଏ ଅଟେ ମୃଗ ମାଂସ
ବିକ୍ରୟ କରିବା ପାଇଁ ବଳିଛି ମାନସ ।୨୭।
ସେ ମାଂସକୁ ଶବର ତତକ୍ଷଣେ କିଣିନେଲା
ପେଶିଥିବା ଦ୍ୱିଜପାଶେ ତତ୍‌କ୍ଷଣେ ଦେଲା ।୨୮।
ବ୍ରାହ୍ମଣ ତାହାକୁ ରନ୍ଧି ପାତ୍ରରେ ବାଢ଼ିଲା
ଭୋଜନ ନିମନ୍ତେ ବିଶ୍ୱାମିତ୍ରଙ୍କୁ ଡାକିଲା ।୨୯।
ଭୋଜନ ପାତ୍ରରେ ବିଶ୍ୱାମିତ୍ର ବସନ୍ତେଣ
ନରମାଂସ ଗନ୍ଧ ପାଇ ହେଲେ କୋପମାନ ।୩୦।
ବୋଇଲେ ଦ୍ୱିଜବର କି କାଣ୍ଡ ନ କଲୁ
ଭକ୍ଷିବାକୁ ନରମାଂସ ମୋତେ ଆଣିଦେଲୁ ।୩୧।
ଏହି ଅଭିଶାପ ତୋତେ ଦେଉଅଛି ମୁହିଁ
ଶୃଗାଳ ହୋଇଣ ନରମାଂସ ଖାଅ ତୁହି ।୩୨।
ସେହି ପାପ ପାଇ ଦ୍ୱିଜ ଶୃଗାଳ ହୋଇଲା
ବ୍ରାହ୍ମଣ ଥିବାରୁ ନନା ନାମକୁ ବହିଲା ।୩୩।
ବିଲୁଆକୁ ନନା ବୋଲି ଏ ହେତୁ କହନ୍ତି
ସାଧୁଜନମାନେ ଶୁଣ ଦେଇ ହେତୁମତି ।୩୪।
୨ । ବାଘମାମୁଁ କଥା ଏବେ ଶୁଣ ସଭାଜନ
ସବୁବେଳେ ବ୍ୟାଘ୍ରସିଂହ ଯାହାଙ୍କ ବାହନ ।୩୫।
ତ୍ରିପୁରର ମାତା ସେହି ଅଟନ୍ତି ପାର୍ବତୀ
ତେଣୁ ସବୁଦିନେ ତାଙ୍କ ପର୍ବତେ ବସତି ।୩୬।

ତାଙ୍କ ଅନୁଚର ବ୍ୟାଘ୍ର ଭ୍ରାତୃର ସଦୃଶ
ତେଣୁ ବାଘମାମୁଁ ନାମ ହୋଇଛି ପ୍ରକାଶ ।୩୭।
୩ । ବେନଜଣ ସ୍ୱାହା ସ୍ୱଧା ଅଂଶରେ ଜନମି
ଅତ୍ୟନ୍ତ ଲାବଣ୍ୟ ତନୁ ବହିଥିଲେ ପୁଣି ।୩୮।
ଉପବାସ କଲେ ନବମୁନିଙ୍କି ଦେଖିଣ
ତାହା ଜାଣି ଋଷି ପାପ ବହିଲେ ତକ୍ଷଣ ।୩୯।
ଚକୁଆ ଚକୋଇ ହୋଇ ହୋଇଲେ ଜନମ
ସେହିଦିନୁ ସେ ଜନମ ଲଭିଲେ ସେ ପୁଣ ।୪୦।
ସେହୁ ବେନ ସଙ୍ଗ ହୋଇଥାନ୍ତି ନିରନ୍ତର
ଏକଦିନେ ଦିବସରେ କରନ୍ତେ ଶୃଙ୍ଗାର ।୪୧।
ଦଇବେ ସୀତା ହରାଇ ଶ୍ରୀରାମ ସେଦିନ
ସେ ବେନଙ୍କି ପୁଚ୍ଛାକଲେ ତାହାଙ୍କ ବିଧାନ ।୪୨।
ସେ ପକ୍ଷୀ ପକ୍ଷିଣୀ ତାହା ଗ୍ରହଣ ନ କଲେ
ରାମଚନ୍ଦ୍ର ତହୁଁ ବହୁ କୋପିତ ହୋଇଲେ ।୪୩।
ବୋଇଲେ ମୋ ଶାପ ତୁମ୍ଭେ ଘେନରେ ବହନ
ଦିବସେ ଶୃଙ୍ଗାର ତୁମ ରହୁ ଚିରଦିନ ।୪୪।
ରାତ୍ରେ ଶୃଙ୍ଗାର କେତେବେଳେ ନ କରିବ
କଲେ ଛାତିଫାଟି ଦୁହିଁଙ୍କର ପ୍ରାଣ ଯିବ ।୪୫।
ଶ୍ରୀରାମଙ୍କ ଶାପେ ତାଙ୍କ ଦିବସେ ଶୃଙ୍ଗାର
ପୂର୍ବରୁ ରହିଛି ସୁଜ୍ଞଜନେ ହେତୁକର ।୪୬।
୪ । ଏକ ନାରୀ ଥିଲା ତାର ନାମ ବେଙ୍ଗବତୀ
ଭରା ଯଉବନ ସେହୁ ଅତି ରୂପବତୀ ।୪୭।
ମହାଦେବଙ୍କର ଶିରେ ସର୍ପ ରହନ୍ତେଣ
ସେ ସୁନ୍ଦରୀ ଦେଖି କଲା ଉପହାସମାନ ।୪୮।

ତାର ଉପବାସ ଦେଖି ଶିବ କ୍ରୋଧ କଲେ
ଲେ ପାପିଷ୍ଠ ବେଙ୍ଗ ଜନ୍ମ ହୁଅ ଯାଇଁ ଭଲେ ।୪୯।
ଯୌବନ ମତ୍ତରେ ମୋତେ ଚିହ୍ନି ନ ପାରିଲୁ
ଇତର ଲୋକ ପର୍ଯ୍ୟେ ମତେ ତୁ ମଣିଲୁ ।୫୦।
ତେଣୁକରି ଫୋଟକାରୁ ବେଙ୍ଗ ଜନ୍ମାଇବୁ
ଲଙ୍ଗୁଡ଼ ନଥାଇ ଚାରିପାଦରେ ଭ୍ରମିବୁ ।୫୧।
ଶିବଙ୍କର ଶାପ ପାଇ ସେହୁ ବେଙ୍ଗବତୀ
ବେଙ୍ଗ ଜନ୍ମ ହୋଇ ମଣ୍ଡପରେ କଲା ଗତି ।୫୨।
୫ । ବିଧାତାଙ୍କ ଝିଅ ନବନବୀନା ସୁନ୍ଦରୀ
ରୂପବତୀ ପଣେ ତାକୁ କେହି ନୁହେଁ ସରି ।୫୩।
ଅବିବାହୀ ପଣେ ସେହୁ ବଞ୍ଚୁଥାଇ ବନ
ଅନେକ ମାର୍ଗରେ ବାଳୀ କରନ୍ତେ ଗମନ ।୫୪।
ଏକ ଋଷି ସନାତନ ନାମେକ ସେଠାରେ
ଧ୍ୟାନ କରୁଥିଲେ ବସି ଯଥା ବିଧାନରେ ।୫୫।
ସେ ନବୀନା ତାଙ୍କୁ ବହୁ ଉପହାସ କଲା
କାମାତୁରେ ନିଜ ରେତ ସ୍ଖଳିତ ହୋଇଲା ।୫୬।
ଏହା ଜାଣି ସନାତନ ଋଷି କୋପ ବହି
ବୋଇଲେ ତାହାକୁ ଚୂଚୁନ୍ଦ୍ରୀ ହୁଅ ତୁହି ।୫୭।
ସବୁଦିନେ ତୋ ଦେହ ଦୁର୍ଗନ୍ଧ ହୋଇଥାଉ
ଦିନବେଳେ କଦାପି ହିଁ ଦୃଶ୍ୟ ଯେ ନ ହେଉ ।୫୮।
ରାତ୍ରରେ ଆହାର ତୋତେ ହୋଇବ ପ୍ରାପତ
ଦିବସରେ ଉପବାସ ରହ ତୁ ନିଶ୍ଚିତ ।୫୯।
ସେହିଦିନୁ ସେ ଯୁବତୀ ଚୂଚୁନ୍ଦ୍ରା ହୋଇଲା
ସନାତନ ଋଷି ଶାପ ପାଇଣ ରହିଲା ।୬୦।

୬ । କ୍ଷୀର ସାଗର ମଧ୍ୟରେ ଅନନ୍ତ ଶୟନେ
ଯେତେବେଳେ ଶ୍ରୀହରି ରହିଲେ ତୋଷମନେ ।୬୧।
ସେ ଅନନ୍ତ ନିଜେ ସହସ୍ର ଫଣା ହୋଇଣ
ଶ୍ରୀହରିଙ୍କ ଉପରେ ଯେହ୍ନ ଢାଙ୍କିଲା ବଦନ ।୬୨।
ଉପରେ ଅନନ୍ତ ଆଚ୍ଛାଦନେ ଧାଡ଼ିକାର
ଶ୍ରୀହରିଙ୍କି ଦିଶିଲା ବହୁତ ଅନ୍ଧକାର ।୬୩।
ନିଜମନେ ବିଚାର କରିଣ ଭବଗ୍ରାହୀ
ଅନନ୍ତଙ୍କୁ ମଣିଗୋଟି ଯାଚିଦେଲେ ନେଇ ।୬୪।
ଅନନ୍ତ ମସ୍ତକେ ମଣି ରହିବାରୁ ଜାଣ
ବିନାଶ ହୋଇଲା ଚହୁଁ ଅନ୍ଧକାର ମାନ ।୬୫।
ସେହିଦିନୁ ନାଗ ମସ୍ତକରେ ହେଲା ମଣି
ସୁଜ୍ଞଜନମାନେ ଏହା ଭଲେ ଥାଅ ଜାଣି ।୬୬।
୭ । ଯେତେବେଳେ ହୋଇଥିଲା ସମୁଦ୍ର ମନ୍ଥନ
ସେ ମଧ୍ୟରୁ ହୋଇଥିଲେ ଚନ୍ଦ୍ର ଉତପନ୍ନ ।୬୭।
ଆଉରି ମନ୍ଥନେ ଲକ୍ଷ୍ମୀ ହୋଇଲେ ବାହାର
ସେ ହେନ ଅଟନ୍ତି ଭାଇ ଭଉଣୀ ପ୍ରକାର ।୬୮।
ଲକ୍ଷ୍ମୀଦେବୀ ଜଗତର ମାତା ଯେ ଅଟନ୍ତି
ତେଣୁକରି ଚନ୍ଦ୍ରମାକୁ ମାମୁଁ ବୋଲୁଥାନ୍ତି ।୬୯।
୮ । ଏକଦିନେ ଚନ୍ଦ୍ରର କିରଣ ପଡ଼ୁଥିଲା
ତେଣୁକରି ଚୌଦିଗ ଉଜ୍ଜ୍ୱଳ ଦିଶୁଥିଲା ।୭୦।
ଦଇବେ ଗ୍ରୀଷମକାଳ ଯୋଗରୁ ନିକର
ଏକଇ ଶଶାକୁ ତୃଷା ହୋଇଲା ଅପାର ।୭୧।
ଜଳ ନ ପାଇଣ ବନୁ ବାହାର ହୋଇଣ
ଚନ୍ଦ୍ର କିରଣକୁ ଜଳ ଭାବି ତାର ମନ ।୭୨।

ଦଉଡ଼ି ଦଉଡ଼ି ସେହି ଜଳ ନ ପାଇଲା
ତୃଷା ଆତୁରରେ ନିଜ ପ୍ରାଣ ହରାଇଲା ।୭୩।
ସେ ଶଶା ମୃତ୍ୟୁ ବନ୍ଧୁର କରଣ ନୁହେଁ ଚ
ସେ ଦୋଷରେ ଚନ୍ଦ୍ର ଦୋଷୀ ହେବାରୁ ଯଥାର୍ଥ ।୭୪।
ତେଣୁ ତା ଅଙ୍ଗରେ ଶଶା ଚିହ୍ନ ଯେ ରହିଲା
ସୁପଣ୍ଡିତମାନେ ବୁଝି ହେଲା କି ନ ହେଲା ।୭୫।
୯ । ତ୍ରେତୟା ଯୁଗରେ ରାମ ରାଜା ହେବା କାଳେ
ବହୁ ଦାନ ଦିଅନ୍ତି ସେ ଦଶରଥଙ୍କ କରେ ।୭୬।
ଏହା ଶୁଣି ଏକ ଦ୍ୱିଜ ହରଷ ହୋଇଣ
ପ୍ରଭାତରୁ ନିଜ ପୁରୁ କରନ୍ତେ ଗମନ ।୭୭।
ଶ୍ୱାନେକ ଦେଖିଣ ଶିବ ମନ୍ଦିର ପାଶେଣ
ହୋଇଲା ତ ଅମଙ୍ଗଳ କରନ୍ତି ଦର୍ଶନ ।୭୮।
ମୋତେ ଆଜ ଭିକ୍ଷାପ୍ରାପ୍ତ ହୋଇବ କି ନାହିଁ
ପ୍ରଥମରୁ ଏ ଶ୍ୱାନକୁ ଦେଖିଲଣି ମୁହିଁ ।୭୯।
ବ୍ରାହ୍ମଣ ହସ୍ତରେ ଏକ ଯଷ୍ଟି ଘେନିଥିଲା
କ୍ରୋଧରେ ସେ ଶ୍ୱାନକୁ ପ୍ରହାର କରିଲା ।୮୦।
ସେ ଶ୍ୱାନ ଯାଇଣ ରାମଚନ୍ଦ୍ରଙ୍କ ଛାମୁରେ
ପ୍ରହାର ପାଇବା କଥା କହିଲେ ବ୍ୟଗ୍ରରେ ।୮୧।
ଶୁଣି ରାମଚନ୍ଦ୍ର ସେ ବିପ୍ରକୁ ହକାରିଲେ
କାହିଁକି ପ୍ରହାର ତାକୁ କଲୁରେ ବୋଇଲେ ।୮୨।
ବ୍ରାହ୍ମଣ ବୋଇଲା ଭିକ୍ଷା ପାଇଁ ଯାଉଥିଲି
ଯା ମୁଖ ଦେଖନ୍ତେ ଅମଙ୍ଗଳ ହେବ ବୋଲି ।୮୩।
ପ୍ରହାର କରିଲି ମୁହିଁ ବହୁତ କ୍ରୋଧରେ
ଏ ତ ଅମଙ୍ଗଳ ଜନ୍ତୁ ଅଟେ ସଦାବେଳେ ।୮୪।

ତାହା ଶୁଣି ରାମଚନ୍ଦ୍ର ବହୁ କୋପ କଲେ
ରେ ଦୋଷୀ ବ୍ରାହ୍ମଣ କ କହୁଛୁ ତୋ ମୁଖରେ ।୮୫।
ସେ କାହିଁକି ଅମଙ୍ଗଳ ହେବରେ ବ୍ରାହ୍ମଣ
ତୋ କର୍ମର ଫଳ ତୁହି ଲଭନ୍ତୁ ପ୍ରମାଣ ।୮୬।
ନ ବୁଝିଣ ଯେବେ ତାକୁ ପ୍ରହାର କରିଲୁ
ସେ ଦୋଷରେ ନଷ୍ଟପ୍ରୁ ତୁ ଦୂଷିତ ହୋଇଲୁ ।୮୭।
ଶ୍ୱାନକୁ ପୃଚ୍ଛିଣ ତହୁଁ ବୋଇଲେ ବଚନ
ବ୍ରାହ୍ମଣେ କ ଦଣ୍ଡ ଦେବା କହ ତୁ ବଦନ ।୮୮।
ଯେଉଁ ଦଣ୍ଡ ଦେବାକୁ ତୁ କହିବୁ ନିଶ୍ଚିତ
ସେ ଦଣ୍ଡରେ ନିଶ୍ଚେ ତାକୁ କରିବ ଦଣ୍ଡିତ ।୮୯।
ଶ୍ରୀରାମଙ୍କୁ ବୋଲୁଛି ସେ ଶ୍ୱାନ ସ୍ଥିର ଚିତ୍ତେ
ସେ ପ୍ରଭୁ କାହିଁକି ତାକୁ ଦଣ୍ଡ ଦେବ ବ୍ୟର୍ଥେ ।୯୦।
ତା ମୁଣ୍ଡରେ ଶାଢ଼ୀ ବାନ୍ଧି ଶିବ ମନ୍ଦିରରେ
ସବୁଦିନେ ରଖିଥାଅ ପରିସ୍ଥ ପଣରେ ।୯୧।
ବହୁତ ସମ୍ପଦ ସେହୁ ଭୋଗ ଯେ କରିବ
ତେବେ ଯାଇ ମୋର ମନ ସନ୍ତୋଷ ହୋଇବ ।୯୨।
ତାହା ଶୁଣି ଶ୍ରୀରାମ ହରଷ କଲେ ମଣି
କୁକୁରକୁ ଦେଲେ ତହିଁ ବ୍ରାହ୍ମଣ ବିଭୂତି ।୯୩।
ବ୍ରାହ୍ମଣଙ୍କୁ ପୃଚ୍ଛିଣ ଚଞ୍ଚଳ ଆଜ୍ଞା ଦେଲେ
ଏ ଜନ୍ମରେ ଏହିପରି ରହିଥା ତୁ ଭଲେ ।୯୪।
ପରଜନ୍ମେ କୁକୁରର ତନୁକୁ ବହିବୁ
ଉଚ୍ଛିଷ୍ଟ ଭକ୍ଷିଣ ତୋର ଜନ୍ମ କଟାଇବୁ ।୯୫।
ଷଟଅଙ୍ଗେ ଜନ୍ମ ହୋଇ ହେଲୁ ମତିହୀନ
ତେଣୁ କୁକୁର ଷଡ଼ଙ୍ଗୀ ବୋଲାଇବୁ ଜାଣ ।୯୬।

ଶ୍ରୀରାମଙ୍କ ଆଜ୍ଞାରେ ସେ କଥା ମହୀତଳେ
ଅଦ୍ୟାବଧି ରହିଅଛି ଜାଣ ସୁଜନରେ ।୯୭।
୧୦ । ଶିବ ସଙ୍ଗେ ଜଳନ୍ଧର ଯୁଦ୍ଧ କରୁଥିଲା
ବାର ବାର ଶିବଙ୍କୁ ସେ ପରାସ୍ତ କରିଲା ।୯୮।
ତାହା ଜାଣି ଶ୍ରୀହରି ସେ ଭାବିଲେ ମନରେ
ଜଳନ୍ଧର ନାରୀ ବୃନ୍ଦା ସତୀତ୍ୱ ବଳରେ ।୯୯।
ବୃନ୍ଦାବତୀ ସତୀତ୍ୱ ନୋହିଲେ ବିନାଶନ
କଦାପି ହିଁ ଏ ରାକ୍ଷସ ନୋହିବ ନିଧନ ।୧୦୦।
ନିଜେ ଜଳନ୍ଧର ରୂପ ହୋଇ ଭବଗ୍ରାହୀ
ବୃନ୍ଦାବତୀ ନିକଟରେ ପ୍ରବେଶିଲେ ଯାଇ ।୧୦୧।
ସ୍ୱାମୀଭାବେ ତାର ସଙ୍ଗେ କରିଲେ ସୁରତି
ଜାଣି ନ ପାରିଲା ତାହା ସତୀ ବୃନ୍ଦାବତୀ ।୧୦୨।
ତା ସତୀତ୍ୱ ନଷ୍ଟ କରିବାରୁ କପଟରେ
ଏଣେ ଜଳନ୍ଧର ଦୈତ୍ୟ ମଲା ଶିବକରେ ।୧୦୩।
ଶେଷେ ତାହା ଜାଣି ବୃନ୍ଦାବତୀ ଶାପ ଦେଲା
ପାଷାଣ ରୂପ ଧରିଣ ଥାଅ ହୋ ବୋଇଲା ।୧୦୪।
ମୋ ପତି କୀଟ ହୋଇଣ ତୋତେ କାଟୁଥିବ
ତୋ ପିଣ୍ଡ ଗଣ୍ଡକୀ ନଦୀ ମଧ୍ୟରେ ପଡ଼ିବ ।୧୦୫।
ତହୁଁ ଗଡ଼ ଗଡ଼ ଶାଳଗ୍ରାମ ହେବ ସେହି
ଏମନ୍ତ ଭାବନ୍ତି ପୂର୍ବ କଥିତ ଅଛଇ ।୧୦୬।
୧୧ । ଲଜକୁଳୀ ଜନ୍ମ କଥା ଶୁଣ ହୋ ସୁଜନ
ଦ୍ୱାପର ଯୁଗର କଥା ଅଛୁଟି ପ୍ରମାଣ ।୧୦୭।
ସ୍ୱର୍ଗର କାମିନୀ ଶକୁନ୍ତଳା ନାମ ତାର
ରତ୍ନଧ୍ୱଜକୁ ସେ ବଶ ହୋଇଣ ନକର ।୧୦୮।

ଅତ୍ୟନ୍ତ ସୁଖରେ ସେହ୍ନ ନାଗ୍ନ ଥିଲା ରହ୍ନ
କେତୁଧ୍ୱଜଙ୍କୁ ଦେଖିଣ ପ୍ରେମେ ହେଲା ବାଇ ।୧୦୯।
ତାର ସଙ୍ଗେ ପ୍ରକାଶ୍ୟରେ ରତି ଆଚରିଲା
ଦେଉଡ଼ଶ୍ରୁର ବୋଲି ଚିତ୍ତେ ଭୟ ନ କରିଲା ।୧୧୦।
ନିଜ ପତି ଋତୁଧ୍ୱଜ ଦେଖିଲା ନୟନେ
ବହୁତ ଧିକ୍‌କାର ତାକୁ କଲା ରୋଷମାନେ ।୧୧୧।
ବୋଇଲା ତୁ ଦେଉଡ଼ଶ୍ରୁର ସଙ୍ଗେ ବିହରିଲୁ
ତିଳେମାତ୍ର ଚିତ୍ତେ ତୁହ୍ନ ଭୟ ନ କରିଲୁ ।୧୧୨।
ଋତୁଧ୍ୱଜ ତାକୁ ଶାପ ଦେଲାକ ବଚନ
ଲଜକୁଳୀ ବୃକ୍ଷରୂପେ ହୁଅ ତୁ ଜନମ ।୧୧୩।
ଲଜ୍ଜାବନ୍ତ କଥା କହ୍ନ ମୋତେ ଲଜ୍ଜା କଲୁ
ପୁଚ୍ଛନ୍ତେ ପଦେ ବଚନ ଉତ୍ତର ନ ଦେଲୁ ।୧୧୪।
ତେଣୁ ଲଜକୁଳୀ ବୃକ୍ଷ ହୋଇ ରହ୍ନଥିବୁ
ଛୁଇଁଲା ମାତ୍ରକେ ତୁହ୍ନ ଝାଉଁଳି ପଡ଼ିବୁ ।୧୧୫।
ସେହ୍ନଦିନୁ ଲଜକୁଳୀ ବୃକ୍ଷ ହେଲା ଜାତ
ସାଧୁ ସୁଜ୍ଞଜନମାନେ ଜାଣ ସୁନିଶ୍ଚିତ ।୧୧୬।
ଏ ସ୍ଥାନରେ ଗାୟକ ଯା କରିଲେ ପ୍ରଶ୍ନ
ତାହା ବୁଝାଇ କହ୍ନିଲି ହେତୁକରି ଘେନ ।୧୧୭।
ହେଲା କି ନ ହେଲା ମୋତେ କୁହନ୍ତୁ ବୁଝାଇ
ଶ୍ୟାମସୁନ୍ଦରର ଦୋଷ ନ ଧରିବ କେହ୍ନ ।୧୧୮।

—ः※ः—

# ପ୍ରଶ୍ନ

## ( କୀର୍ତ୍ତନ ସ୍ୱର )

ହେ ଗାୟକ ଭାଇ ଶୁଣ ମନଦେଇ ପଚାରିବ ଯେ ଚରିତ ।
ଏ ମହା ସଭାରେ ସାଧୁ ସୁଜ୍ଞାନରେ ଶୁଣୁଥିବେ ଦେଇ ଚିତ୍ତ
ତାହା ଦେବଟି କହି । ନ କହିଲେ ଯିବ ଲଜ୍ଜା ପାଇ ।୧।
ମହାଯୁଗେ କେତେ ବରଷ ହୁଅଇ ମନୁ କେତେ ଯୁଗ ହୁଏ ।
କେତେବେଳେ କଳ୍ପ କେତେବେଳେ ବ୍ରହ୍ମ ସଂସାର ମଧ୍ୟରେ ।
ଚନ୍ଦ୍ କ ରୂପେ ସ୍ଥିତ କେତେ ଚନ୍ଦ୍ର ହୁଏ ଜାତ ।୨।
ବ୍ରହ୍ମାଙ୍କୁ ବୟସେ ହୁଏ କେତେକାଳେ ଶିବଙ୍କ ସଂଖ୍ୟାଟି କେତେ
ମହା ପ୍ରଳୟର ବାଣୀ ଏ ସ୍ଥାନରେ କହିଦେବ ପୁଣି ।୩।
ଷଡ଼ବେଗ ଓବାଳି ଯାହାକୁ ବୋଦନ୍ତ ଆଦ୍ୟନାମ କଏ ।
କେଉଁଠାରୁ ଉତପତ୍ତି କେଉଁ ବାଗ ଯାହାକୁ ଯେପରି ରହେ ।
ନବଖଣ୍ଡ ମେଦିନୀ ଭାଗ ବୁଝାଇଣ ହୁଅ ଭିନ୍ନ ।୪।
ଏ ନୁହଇ ଭାଇ ଖେଳଘର କଥା କହିବାକୁ ନିଶ୍ଚେ ହେବ ।
ସାଧୁ ସୁଜ୍ଞଜନେ ଶୁଣିଣ ତାଙ୍କର ଚିତ୍ତୁ ସଂଶୟ ନାଶିବ ।
ନ କହିବଟି ଯେବେ ତଅଁରକୁ ଖଞ୍ଜଣୀ*ଛାଡ଼ିଯିବ ତେବେ ।
ଗାୟକ ନାମକୁ ବହିବ କମ୍ପାଇଁ ଯେବେ ନ ପାରିବ କହି ।
ସବୁ ବଦ୍ୟା ଭାବକୁ ଜାଣିଲେ ଗାୟକରେ ଲେଖା ହୋଇ ।
ଶ୍ୟାମ ସୁନ୍ଦର ଭାଷା କହିଦିଅ ହୋଇଣ ହରଷ ।

---

* ଖଞ୍ଜଣୀବାଲା ବୋଲିଲେ 'ଖଞ୍ଜଣୀକି ଛାଡ଼ିଯିବ' ବୋଲିବେ
କୀର୍ତ୍ତନବାଲା ବୋଲିଲେ 'ମୃଦଙ୍ଗକୁ ଛାଡ଼ିଯିବ' ବୋଲିବେ ।

# ଉତ୍ତର

## ରାଗ—ମଙ୍ଗଳାଶ୍ରୀ

ଶୁଣ ସଭାଜନେ ଦେଇ ମନକର୍ଣ୍ଣ ପ୍ରଶ୍ନକୁ ଯେବା ଉତ୍ତର ।
ତାହା କହିବାକୁ ଚିତ୍ତ ବଳଅଛି ହେଉ କି ନ ହେଉ ମୋର ।୧।
ଗାୟକ ରଚନ କରିବେ ପ୍ରଶନ ମହାଯୁଗ ଭାବକଥା ।
କହୁଛି ବୁଝାଇ ସାଧୁ ସୁପଣ୍ଡିତେ ଲେଖିଥାନ୍ତୁ ହେଲୁ ଚେତା ।୨।
ସତ୍ୟ ତ୍ରେତା ଦ୍ୱାପର କଳିଯୁଗ ମିଶିଣ ମହାଯୁଗ ପରକାଶେ ।
ଏହି ପରକାରେ ମହାଯୁଗ ହୋଇଅଛି ଜାଣି ସୁବୁଦ୍ଧେ ।୩।
ସତ୍ୟଯୁଗେ ସତରଲକ୍ଷ ଅଠେଇଶସହସ୍ର ଭୋଗ ହୁଅଇ ।
ତ୍ରେତାଯୁଗ ବାରଲକ୍ଷ ଛୟାନବେସହସ୍ର ବର୍ଷ ବୋଲଇ । ।୪।
ଦ୍ୱାପର ଯୁଗ ଆଠଲକ୍ଷ ଚୌଷଠି ସହସ୍ର ବରଷ ଜାଣ ।
ଚାରିଲକ୍ଷ ବତିଶ ସହସ୍ର ବର୍ଷ କଳିଯୁଗଟି ପ୍ରମାଣ । ।୫।
ଚାରିଯୁଗ ମିଶି ତେୟାଳିଶି ଲକ୍ଷ ବେନି ଅୟୁତ ହୋଇଲା ।
ମହାଯୁଗ ବର୍ଷ ସୁମାରି ଏତେକ ଜାଣ ହେ ଗାୟକ ପିଲା ।୬।
ଏକସ୍ତରୀ ଯୁଗେ ଏକ ମନୁ ହୁଏ ଚଉଦ ମନୁରେ କଳ୍ପେ ।
ଚଉଦ କଳ୍ପରେ ଏକ ବ୍ରଣ ହୋଇ କହିଦେଲି ମୁହିଁ ଅଳ୍ପେ ।୭।
ଏକାଦଶ ବ୍ରଣ ବିନାଶ ହୋଇଲେ ଏକଚନ୍ଦ୍ର ପରକାଶେ ।
ଶତଚନ୍ଦ୍ର ଯେବେ ଭୋଗ ହୋଇଯିବେ ଏକ ଇନ୍ଦ୍ର ମିଳେ ପାଶେ ।
ଶଏ ଇନ୍ଦ୍ର ଯେବେ ବିନାଶ ହୁଅନ୍ତି ବ୍ରହ୍ମାଙ୍କୁ ଦିବସେ ହୋଇ ।
ଶଏ ବ୍ରହ୍ମା ହତ ହୋଇଲେ ଶିବଙ୍କୁ ଅର୍ଦ୍ଧ ନିମିଷ ଅଟଇ ।୯।
ଶିବଙ୍କୁ ଶଏବରଷ ପୂର୍ଣ୍ଣ ହେଲେ ବିଷ୍ଣୁଙ୍କୁ ହୁଏ ପ୍ରହରେ ।
ସେହିପରି ବିଷ୍ଣୁଙ୍କୁ ଶଏବରଷ ହୋଇଯାଇ ଯେ କାଳରେ ।।୧୦।
ମହାପ୍ରଳୟ ହୁଅଇ ଯେତେବେଳେ କେହି ରହି ନ ପାରନ୍ତି ।
ମୂଷଳଧାରରେ ବୃଷ୍ଟି ହୋଇବାରୁ ପ୍ରାଣୀମାନେ ନାଶଯାନ୍ତି ।୧୧।

ଏ ଉତ୍ତରୁ ଷଡ଼ ରାଗର ନିୟମ ବୁଝ ଶୁଣ ମନ ଦେଇ ।
କେଦାର କର୍ଣ୍ଣାଟ ଦେଶାକ୍ଷ ମାଳବ ବସନ୍ତ ମହ୍ଲାର ହୋଇ ।୧୨।
ଏ ଷଡ଼ ରାଗରୁ ଉପରାଗମାନ ଜାତ ହୋଇଲେ ନିଶ୍ଚୟ ।
ନଜନାମ ଦେଶୁ ଉତ୍ପନ୍ନ ଲକ୍ଷଣ ରହିଲେ ହୋଇ ଅକ୍ଷୟ ।୧୩।
ନବଖଣ୍ଡ ମେଦନୀର ଭାବ ପୁଣି ଶୁଣ ସୁପଣ୍ଡିତ ଗଣ ।
ଷଡ଼ତିଲେ ଏକ ଯବ ହୋଇବାରୁ ଚବିଶ ଯବେ ମୁଷ୍ଟି ପୁଣ ।୧୪।
ଷଡ଼ମୁଷ୍ଟି ହେଲେ ଏକ ହସ୍ତ ହୁଏ ଚବିଶ ହସ୍ତରେ ଧେନୁଜ ।
ହିସସ୍ର ଧେନୁକେ କୋଶେପରକାଶେ ଚବିଶକୋଶେଯୋଜନେକ ।୧୫
ଦୁଇସସ୍ର ଯୋଜନରେ ଏକଦେଶ ଶଏ ଦେଶରେ ମଣ୍ଡଳ ।
ଦ୍ୱିସସ୍ର ମଣ୍ଡଳେ ଦଣ୍ଡ ପରକାଶେ ବୁଝ ସାଧୁ ସୁଜ୍ଞଜନେ ।୧୬।
ଖଣ୍ଡ ଖଣ୍ଡ ହୋଇ ନବଖଣ୍ଡ ହେଲେ ଏକ ମେଦନୀ ହୁଅଇ ।
ସାଧୁ ସୁଜ୍ଞ ସୁପଣ୍ଡିତମାନେ ବୁଝ ହେଲ କି ନହେଲ ଏହି ।୧୭।
ଗାୟକ ଭାଇ ଯା ପ୍ରଶ୍ନ କରିଥିଲେ କହିଲି ତାର ଉତ୍ତର ।
ଷୋଳଶ ନବାସୀ ବରଷରେ କହେ ଦୈବଜ୍ଞ ଶ୍ୟାମସୁନ୍ଦର ।୧୮।

—ଃ*ଃ—

## ପ୍ରଶ୍ନ

ଗାୟକ ଭାଇଙ୍କୁ ଏବେ ପଚାରୁଛି ମୁହିଁ ।
ପ୍ରଶ୍ନକୁ ଉତ୍ତର ସବୁ କହିଦେଲେ ସେହି ।୧।
ସାଧୁ ପଣ୍ଡିତମାନେ ହୋଇଣ ହରଷ ।
ତେଣୁ ଏ ସ୍ଥାନ ପ୍ରଶଂସା କରିବେ ଅବଶ୍ୟ ।୨।
ଏ ଯେଉଁ ଚନ୍ଦ୍ର ଦେବତା ଆକାଶ ମଧ୍ୟରେ ।
ପକ୍ଷେ ଛୁଟେ ପକ୍ଷେ ବଢ଼େ କେଉଁ କାରଣରେ ।୩।
ଵସନ୍ତକେ କେଉଁ ବୃକ୍ଷମାନେ ନିଦ୍ରା ଯାନ୍ତି
ଅଣବାବୁଆ ହୋଇ କେ ସଂସାରେ ଅଛନ୍ତି ।୪।

ମାତା ରଜୋବନ୍ତି ନୋହି ଜନ୍ମାନ୍ତି କୁମର
ଗାୟକ ଭାଇ କହିବ ଏଥିର ଉତ୍ତର ।୫।
ଦିବସେ ଅନ୍ଧ କିମ୍ପାଇଁ ପେଚକ ଖଦ୍ୟୋତ -
ଏକପାଦେ ଜୋକ କିମ୍ପା ହୁଅ ଆତପାତ ।୬।
ବର ଅଶ୍ୱତ୍ଥ ବିବାହ କିମ୍ପାଇଁ ହୋଇଲା
ବଢ଼ିଣା ଗଣ୍ଡିରେ କେତୁ କଳା ଭିଆଇଲା ।୭।
ବକ ହଂସ ଏ ଦୁହିଁଙ୍କ ପକ୍ଷ କାହିଁପାଇଁ
ଶୁକ୍ଳବର୍ଣ୍ଣ ହୋଇଅଛି କହିଦେବ ଭାଇ ।୮।
ଅଗାଣ୍ଡିଆ ବଇଷମ ଅଠଇଠି ଯେହୁ
ନିର୍ଣ୍ଣୟ କରିଣ କହିଦେବ ଭାବ ଯେହୁ ।୯।
ଶିବ କିମ୍ପା ଲିଙ୍ଗ ରୂପେ ରହିଲେ ସ୍ଥାନରେ
ଏ କଥା ବୁଝାଇ କହିଦେବ ଏ ସଭାରେ ।୧୦।
କିଏ ଇନ୍ଦ୍ରଧନୁ ହୋଇ ଆକାଶେ ପଡ଼ଇ
କେଉଁଠାରୁ ଆସି ସେହୁ ରୂପ ପ୍ରକାଶଇ ।୧୧।
ଯେବେ ସଦଗୁରୁ ସେବା କରିଥିବ ଭାଇ
ତେବେ ଏ ସ୍ଥାନରେ ସିନା କହିବ ବୁଝାଇ ।୧୨।
ନୋହିଲେ ଗାୟକ ପଣ ଆଜଠୁ ଛାଡ଼ିବ
ଶରଧାନକୁ ତୁମ୍ଭର ମନେ ରହିଥିବ ।୧୩।
କେତେ ହରଷ ହୋଇଣ ଘରୁ ଆସିଥିଲେ
ସର୍ପ ଆଗେ ଭେକପରି ଏ ସ୍ଥାନ ହୋଇଲେ ।୧୪।
ବ୍ୟାଘ୍ର ସଙ୍ଗେ ବିଗଡ଼ିକି କରୁଛି ଲଢ଼ାଇ
ସେହି ପରକାରେ ଆମ୍ଭେ ତୁମ୍ଭେ ହୋଇ ।୧୫।
ପ୍ରଶ୍ନ ଉତ୍ତରମାନ ଆଗକରି ଭାଷ ।
ଶ୍ୟାମସୁନ୍ଦର କହଇ ହୋଇଣ ହରଷ ।୧୬।

## ଉତ୍ତର

ଶୁଣି ସଭାଜନମାନେ ହୋଇବେ ହରଷ ।
ପ୍ରଶ୍ନର ଉତ୍ତରମାନ କରିବି ପ୍ରକାଶ ।
ଏ ସ୍ଥାନରେ ହେ । ସନ୍ତୋଷ ହୋଇଣ ସୁଜ୍ଞଜନରେ ହେ ।୧।
ଶାସ୍ତ୍ରକ ଭାଇ ବୋଇଲେ ଚନ୍ଦ୍ରଙ୍କର ଗୁଣ
ପକ୍ଷେ ବଢ଼ି ପକ୍ଷେ ଛୁଡ଼ୁଛନ୍ତି ଅନୁକ୍ଷଣ ।
ତାର ଶୁଣ ହେ । କହୁଅଛୁ ସଭାଜନେ ଶୁଣ ହେ ।୨।
ଦେବତାଙ୍କ ଗୁରୁ ବୃହସ୍ପତି ଯେ ଅଟନ୍ତି ।
ତାହାଙ୍କର ନାରୀ ତାରା ନାମରେ ଯେ ସତୀ ।
ନଡ଼ୁଥାନ୍ତି ହେ । ଚନ୍ଦ୍ରଦେବ ପଢ଼ିବାକୁ ଯାନ୍ତି ଯେ ।୩।
ଏକ ଦିନେ ଗୁରୁପତ୍ନୀ ତାର ସଙ୍ଗେ ପୁଣ ।
ଗୁପତେ ପୀରତି କଲେ ଶଶଧର ଜାଣ ।
ପୁତ୍ରୋତ୍ପନ୍ନ ହେ । ହୋଇବାରୁ ବୁଧ ଦେଲେ ନାମ ହେ ।୪।
ଜାଣି ବୃହସ୍ପତି ଚନ୍ଦ୍ରଙ୍କୁ ଯେ ଶାପ ଦେଲେ ।
ପକ୍ଷେ ଛୁଡ଼ ପକ୍ଷେ ବଢ଼ୁଥାଅ ତୁ ବୋଇଲେ ।
ଏ କର୍ମରେ ହେ । କ୍ଷୟ ବୃଦ୍ଧି ହୁଏ ନିରନ୍ତରେ ହେ ।୫।
ଗୁରୁପତ୍ନୀ ହରଣ ଦୋଷରୁ ଶଶଧର ।
ପକ୍ଷେ ବଢ଼ି ପକ୍ଷେ ଛୁଡ଼ଯାଏ ତା ଶରୀର ।
ହେତୁକର ହେ । ନୁହେଁ ଅଗମ୍ୟ ଅଗୋଚର ହେ ।୬।
ଅଟନ୍ତି ତନୁଜ ପୁଣି ଚକ୍ଷୁକୁଣ୍ଡା କୁମୁଦ ।
ଦିବା ଭାବେ ଏହୁ ବୃକ୍ଷେ ଯାଇଥାନ୍ତି ନିଦ ।
ରାତ୍ର ହେଲେ ହେ । ଉଜାଗର ହେଉଥାନ୍ତି ଭଲେ ହେ ।୭।
ବାପ ନ ଥାଇଣ ଭଗୀରଥ ଜନମିଲେ
ତେଣୁ ଅଣବାବୁଆ ନାମକୁ ସେ ବହିଲେ ।
ହୃଦୟରେ ହେ । ଭାବୁଥାଅ ସାଧୁ ସୁଜ୍ଞଜନର ହେ ।୮।

କଦଳୀ ଗଛର ମାଠା ନୋହ୍ନ ରଜବଣ୍ଡ ।
ପୁଷ୍ପମାନଙ୍କୁ ସେ ଆଗେ କରଇ ଉତ୍ପତ୍ତି ।
ଥାଅ ଶାନ୍ତ ହେ । ଏ କଥାରେ ନାହିଁ କିଛି ଭ୍ରାନ୍ତ ହେ ।୯।
ସ୍ୱର୍ଗର ଗନ୍ଧର୍ବ କୁନ୍ତସ୍ୱବା ନାମ ତାର ।
ଚଞ୍ଚଳା ଖଦ୍ୟୋତ ଜାୟା ବେନ ହେତୁକର ।
ଢବସରେ ହେ । ବୀରସ୍ୱବା ସଙ୍ଗେ ପ୍ରୀତି କଲେ ହେ ।୧୦।
ତାହା ଜାଣି କୁନ୍ତସ୍ୱବା ବହୁ କୋପ ହୋଇ ।
ସେ ବେନ ନାରୀଙ୍କି ଅଭିଶାପ ଦେଲା ତହିଁ ।
ଲାଜ ନାହିଁ ଲୋ । ଢବସରେ ହେଲ ପ୍ରୀତିବାଇ ଲୋ ।୧୧।
ଏହି ଅଭିଶାପ ମୋର ଘେନ ଲୋ ନିକର ।
ଢବସରେ ହୁଅ ତୁମ୍ଭେ ଅନ୍ଧ ପରକାର ।
ରଜନୀରେ ଯେ । ଅମେଧ ଭକ୍ଷିବ ହରଷରେ ହେ ।୧୨।
ସେହିଦିନୁ ଖଦ୍ୟୋତ ଉଲୁକ ଢବାଅନ୍ଧ ।
ପ୍ରାପ୍ତ ଶାପ ପାଇ ବେନ ହୋଇଲେ ପ୍ରବଧ ।
ସାଧୁବୃନ୍ଦ ହେ । ଶୁଣ ଏହା ମନେ ବହି ମୋଦ ହେ ।୧୩।
ଶଇଳା ନାମରେ ଏକ ସଣ୍ଡାକନ୍ୟା ଥିଲା ।
ଦୁର୍ମାକ୍ଷାସୁର ତାଁ ରୂପ ଦେଖି ମୋହ ହେଲା ।
ପାଶୋରିଲା ହେ । ପାପକୁ ସେ ଭୟ ନ କରିଲା ହେ ।୧୪।
ଏକପାଦ ଟେକି ସେ କନ୍ୟାକୁ ଇଙ୍ଗିତରେ ।
ବ୍ୟସ୍ତ କରିଲା ସେ ଦୈତ୍ୟ ବହୁତ ପ୍ରକାରେ ।
ତତକାଳେ ହେ । ସଣ୍ଡାକନ୍ୟାକୁ ଗୃହିଣୀ ବୋଲେ ହେ ।୧୫।
ଏକ ଚରଣ ଟେକଣ କଲୁ ତୁ ଇଙ୍ଗିତ ।
ଜୋକ ଦେହ ବହି ତୁହି ମର୍ତ୍ତ୍ୟେ ହୁଅ ଜାତ ।
ଅସ୍ଥିରକ୍ତ ହେ । ନ ଥାଇ ମାଉଁସ ହେବ ସ୍ଥିତ ହେ ।୧୬।

ଏକଇ ପାଦରେ ସଦା ଗମନ କରିବୁ ।
ପ୍ରଜ ରକ୍ତ ପଶୁ ମାଂସ ଦେଖିଣ ଭକ୍ଷିବୁ ।
ଜଳେ ଥିବୁ ହେ । ଜୋକ ହୋଇ ନାମକୁ କହିବୁ ହେ ।୧୭।
ସେ ସପ୍ତ କନ୍ୟା ଶାପରେ ଦୁର୍ମାକ୍ଷା ଅସ୍ୱର ।
ଜୋକ ତନୁ ବହି ବାସ କରିଲା ଜଳର ।
ସୁଜ୍ଞାନର ହେ । ଅନ୍ତର୍ଗତରେ ବସ୍ତୁର ଜର ହେ ।୧୮।
ବଟ ଅଶ୍ୱତ୍ଥ ବିବାହ ଶୁଣ ହେ ସୁଜନ ।
ବଟ ସଦାଶିବ ଅଶ୍ୱତ୍ଥ ଯେ ବିଷ୍ଣୁ ପୁଣ ।
ବଟ କ୍ଷୀର ହେ । ଧରସ୍ୱଶ ବୋଲି-ହେତୁକର ହେ ।୧୯।
ଭସ୍ମ ଜଟା ଖଡ଼ି ବିଭୂତି ଭୂଷଣ ହେନ ।
ବଟ ଅଶ୍ୱତ୍ଥ ବିବାହ ଖଞ୍ଜିଲନ୍ତି ମୁନ ।
ଥାଅ ଜାଣି ହେ । ଏଥିରେ ପାପ ବିନାଶ ପୁଣି ହେ ।୨୦।
ସତ୍ୟଯୁଗରେ ଇନ୍ଦ୍ରପୁରେ ଏକ ସଭା ହେଲା ।
ସ୍ଥାନ ମାର୍ଜନକୁ କାର ଚିତ୍ତ ନ ବଳିଲା ।
କୁବେରକୁ ହେ । ବୋଲେ ମାର୍ଜିତ କର ପୁରକୁ ହେ ।୨୧।
ସେ ଆଦେଶ ଘେନିଣ କୁବେର ତତକାଳେ ।
ଏକଇ ବଢ଼ଣା ସେହୁ ଘେନ ନିଜ କରେ ।
ଆନନ୍ଦରେ ହେ । ସ୍ଥାନ ସମାର୍ଜନ ସେହୁ କରେ ହେ ।୨୨।
ବାର ବାର ଦକ୍ଷିଣାକୁ କରନ୍ତେ ଗମନ ।
ଫିଟି ଯାଉଥାଏ ସେହୁ ନିରବ୍ଧ ବସ୍ତ୍ରଣ ।
କ୍ରୋଧମନ ହେ । କୁବେର ହୋଇଲେ ମନ ଭିନ୍ନ ହେ ।୨୩।
ଦୁର୍ବାସା ଋଷି ଆସିଣ ଏକ କଳା ଦେଲେ
ତାର ତଳେ ସ୍ୱାକୁ ଗୁଡ଼ିଦିଅ ହୋ ବୋଇଲେ ।
ତତକାଳେ ହେ । ଭଡ଼ ହୋଇ ତାହାଙ୍କୁ ଶପିଲେ ହେ ।୨୪।

ବକ ହଂସ ବେନି ପକ୍ଷୀ ହରଷ ହୋଇଣ
ସେବା କରୁଥିଲେ ଯାଇଁ ବ୍ରାହ୍ମଣ ଚରଣ ।
ସେବା ଦେଖି ହେ । ସନ୍ତୋଷ ହୋଇଲେ ଅଷ୍ଟଆଖି ହେ ।୨୫।
ବୋଇଲେ ତୁମ୍ଭ ଦୁହିଁଙ୍କ ପକ୍ଷ ଧଳା ହେଉ ।
ଯୁଗ ଯୁଗାନ୍ତରକୁ ଏ କଥା ରହିଥାଉ ।
ଅନ୍ୟ ନୋହୁ ହେ । କଳାଚନ୍ଦ୍ର ତୁମ୍ଭଠାରୁ ଯାଉ ହେ ।୨୬।
ଯୁଧିଷ୍ଠିରଙ୍କ ଶାପରେ କୁମ୍ଭୀରର ଜାଣ ।
ମଳଦ୍ୱାର ରୁନ୍ଧ ହୋଇଅଛି ସଦାଦିନ ।
ମୁଖ ଦେଇ ହେ । ଭକ୍ଷିବା ଦ୍ରବ୍ୟକୁ ଉଦ୍‌ଗାରଇ ହେ ।୨୭।
ତେଣୁ ତାକୁ ଅଗାଣ୍ଡିଆ ବୈଷ୍ଣବ ବୋଲନ୍ତି ।
ସୁଜ୍ଞଜନମାନେ ଏହା ହୃଦେ ଥାଅ ଚିନ୍ତି ।
କଷ୍ଟଗତ ହେ । ନୁହଁଇଟି ଏ ଚରିତ ଅତି ହେ ।୨୮।
ପୂର୍ବେ ଦକ୍ଷ ପ୍ରଜାପତି ଏକ ଯଜ୍ଞ କଲେ
ବଡ଼ ହୋଇଁ ଶିବଙ୍କୁ ସେ ବରଣ ନ କଲେ ।
ଦୁର୍ଗା ଜାଣି ହେ । ଶିବଙ୍କୁ କହିଲେ ସେହୁ ବାଣୀ ହେ ।୨୯।
ଅନୁମତି ଘେନି ଦୁର୍ଗା ପିତା ପୁରେ ଗଲେ ।
ତାଙ୍କ ପିତା ଦକ୍ଷ ଦେଖି ବହୁ ଧିକ୍‌କାରିଲେ ।
ସେ ବୋଇଲେ ହେ । ଯୋଗୀନାଥ ହୋଇଛୁ ତୁ ଭଲେ ।୩୦।
ପିତାଙ୍କର ମୁଖୁ ସତୀ ଶୁଣିଣ ଧିକ୍‌କାର ।
ସେ ଯଜ୍ଞକୁଣ୍ଡରେ ଝାମ ଦେଲେ ତତକାଳ ।
ମହାକାଳ ହେ । ଜାଣି ହୋଇଲେ ପୂରୁଁ ବାହାର ହେ ।୩୧।
ମହା କୋପମୂର୍ତ୍ତି ହୋଇ ଶିବ ଚଳିଗଲେ
ଯଜ୍ଞ ସ୍ଥାନକୁ ପ୍ରଥମେ ବିନାଶ କରିଲେ ।
ତହୁଁ ଗଲେ ହେ । ଦକ୍ଷମୁଣ୍ଡ ଛିଣ୍ଡାଇଣ ଦେଲେ ହେ ।୩୨।

ସଦାଶିବଙ୍କର କୋପ ଜାଣି ଦକ୍ଷନାରୀ
ସାନ୍ତ୍ୱନା ନମନ୍ତେ ନଜେ ଘେନ ଅର୍ଘ୍ୟଥାଳୀ ।
ଦାଦାରଲେ ହେ । ଶିବଙ୍କୁ ସେ ବନ୍ଦାପନା ଦେଲେ ହେ ।୩୩।
ଲିଙ୍ଗ ଦେଖାଇଣ କୋପ ବହିଣ ଶଙ୍କର
ଅଭିମାନ ଲଜ୍ଜା ହେଲା ଦକ୍ଷ ନାରୀଙ୍କର ।
ଶାପଦେଲେ ହେ । ଲିଙ୍ଗରୂପେ ଥାଅ କାଳେକାଳେ ହେ ।୩୪।
ଶାଶୁଙ୍କର ଶାପ ପାଇ ଭୋଳା ମହେଶ୍ୱର
ଲିଙ୍ଗରୂପ ହୋଇ ସେହୁ ରହିଲେ ସଂସାର ।
ହେଉଛକର ହେ । ଦକ୍ଷଯଜ୍ଞ ବଧି ସମାଧିର ହେ ।୩୫।
ପଞ୍ଚବଟୀ ବନେ ରାମ ଲକ୍ଷ୍ମଣ ଯେ ଥିଲେ ।
ସୂର୍ପଣଖାର ନାସାକୁ ଛେଦନ କରିଲେ ।
ସେହୁ ଗଲା ଯେ । ରାବଣ ଆଗରେ ସେ କହିଲା ହେ ।୩୬।
ଯେଉଁ ନାସା ଛୁଞ୍ଚିଗଲା କାଟନ୍ତେ ଲକ୍ଷ୍ମଣ ।
ଇନ୍ଦ୍ରଧନୁ ହୋଇ ସେହୁ ଗଲା ଗଗନେଣ ।
ଉଦେ ହୁଏ ଯେ । ନାନାବର୍ଣ୍ଣେ ସେହୁ ଶୋଭାପାଏ ଯେ ।୩୭।
ଗାୟକ ଭାଇ ଯେ ମୋତେ ପ୍ରଶ୍ନ କରିଥିଲେ ।
ଠିକ୍ ଠିକ୍ କରି କହିଦେଲି ଏ ସ୍ଥାନରେ ।
ସୁଜ୍ଞନରେ ହେ । ଅର୍ଥ ବାଛି ଘେନ ହୃଦୟରେ ହେ ।୩୮।
ଆଜ ଯେବେ କିଛି ଶିଖିଅଛ ଆରେ ଭାଇ ।
ପଚାରିଣ ଏ ସ୍ଥାନରେ ସ୍ଥିର କର ଦେଖି ।
ଦେବକହି ହେ । ଶ୍ୟାମବୋଲେ ମୋର ଦୋଷନାହିଁ ହେ ।୩୯।

—୫*୫—

# ପ୍ରଶ୍ନ

( କୀର୍ତ୍ତନ ସ୍ୱର )

ଶୁଣ ସଜ୍ଜନେ ଦେଇ ମନକର୍ଣ୍ଣ ଗାୟକ ଭାଇଙ୍କ କଥା ।
ପ୍ରଶ୍ନ କରିବାକୁ କହୁଛନ୍ତି ସେହୁ ଶୁଣ ଦେଇ ହେତୁ ଚେତା ।
କହି ନ ପାରିବ ଯେବେ
ଚଅଁରକୁ ଗୁଡ଼ିପିବେ ତେବେ ।୧।
ପଳାଶ ଫୁଲ କାହିଁପାଇଁ ଅପୂଜା ରହିଲା ସଂସାରେ ।
ବିଷ୍ଣୁଙ୍କ ମସ୍ତକେ ତୁଳସୀ କିମ୍ପାଇଁ ଦିଆହୁଏ ସଦାକାଳେ ।
ତାମ୍ରରଙ୍ଗ ଗଛ କାହିଁ ଥିଲା
କି କାରଣେ ମର୍ତ୍ତ୍ୟେ ଜନମିଲା ।୨।
କାର୍ତ୍ତିକେଶ୍ୱରଙ୍କର ଜନମ ବୃତ୍ତାନ୍ତ କହିଦିଅ ଆରେ ଭାଇ ।
ଗଣନାଥଙ୍କର ମୂଷିକ ବାହନ ହୋଇଅଛି କାହିଁପାଇଁ ।
କନ୍ଦର୍ପ କପର ଜନ୍ମ ହେଲା
କାହା ଗର୍ଭରେ ସେ ରହିଲା ।୩।
ହସ୍ତିନା କଟକ ନଗର ଦୁଆର ବନ୍ଦ ହୋଇଲା କପର ।
ଜଉଶାଳଘରେ ପାଣ୍ଡବ ଯେ ଥିଲେ କେ ନେଲା ତାଙ୍କୁ ଉଦ୍ଧାର ।
କେତେ ଆଙ୍ଗୁଳ ଅଟେ ଆକାଶ
କେତେ ତାରା ତହିଁ ପରକାଶ ।୪।
ହୋଇ କେତେ ଧାର ବରଷଇ ଜଳ କହିବ ଏଥର ତତ୍ତ୍ୱ ।
ହାତେ ଦେଉଳରେ ବାରହାତ ଦିଅଁ କାହିଁ ହୋଇଅଛି ସ୍ଥିତ ।
କୋଇଲି ତାର ଅଣ୍ଡା ନେଇ
କାକ ବସାରେ କିମ୍ପା ରଖଇ ।୫।

ପୂର୍ବକାଳେ ଅଶ୍ୱମାନେ ଉଡ଼ୁଥିଲେ ଏବେ କମା ନ ଉଡ଼ନ୍ତି ।
କିଏ ତାଙ୍କ ପକ୍ଷ କାଟି ଦେଇଅଛି କହିଦେଲେ ଯିବ ଭ୍ରାନ୍ତି ।
ସମୁଦ୍ର ଅଟେ କେତେ ଆଙ୍ଗୁଳ
କେତେ ନଦୀରୁ ଢେଳଇ ଜଳ ।୬।
ଜଉଗାଳ ଘର କେତେକ ଯୋଜନ ତାକୁ କିଏ ନିର୍ମାଣିଲା ।
ପଞ୍ଚକୃଷ୍ଣ ଜମ୍ବୁଦ୍ୱୀପର ବିଷୟ କହ ହେ ଗାୟକ ପିଲା ।
କେଉଁଠାରୁ ହେଲା ସେହୁ ଜାତ
ଶୁଣିଲେ ସନ୍ତୋଷ ହେବ ଚିତ୍ତ ।୭।
ଅଷ୍ଟ ଐଶ୍ୱର୍ଯ୍ୟ ନାମମାନ କହ ଗୋଟି ଗୋଟି କରି ଭାଇ ।
ଚନ୍ଦ୍ର ସୂର୍ଯ୍ୟଙ୍କର ଗୁରୁ କେ ଅଟଇ ତାହା କହିଦିଅ ଫେରି ।
ମୂଢ଼ ଶ୍ୟାମସୁନ୍ଦର ଭାଷ
ସୁଜ୍ଞଜନେ ନ ଦେଖିବ ଦୋଷ ।୮।

—:*:—

## ଉତ୍ତର

ଏକ ଚିତ୍ତ ହୋଇ ଏବେ ଶୁଣ ହେ ସୁଜନ
ଗାୟକ ଭାଇ ଯା ଏଥେଁ କରିଲେ ପ୍ରଶ୍ନ ।୧।
କହିବାକୁ ଇଚ୍ଛା ମୋର ବଳୁଅଛି ତାହା
ମିଳୁ ବା ନ ମିଳୁ ଅର୍ଥ ମୁଁ ଜାଣିଛି ଯାହା ।୨।
ଅଳ୍ପ ଜଳେ ମଫସି ହୁଅଇ ଫରଫର
ଅପୂର୍ଣ୍ଣ କଳସ ଶବ୍ଦ କରେ ଧାଡ଼ିହାଉ ।୩।
ଅଳ୍ପ ଦୁଗ୍ଧ ଦେବ ଧେନୁ ଅଟେ କ୍ରୋଧବନ୍ତ
ଅଳ୍ପ ବିଭ ଥିବା ପ୍ରାଣୀ ପ୍ରତାପ ବହୁତ ।୪।

ଅଳ୍ପ ବିଦ୍ୟା ପଢ଼ି ପ୍ରାଣୀମାନେ ଏହିପରି
ଅହଙ୍କାର ଭାବକୁ ମନରେ ଥା'ନ୍ତି ଧରି ।୫।
ଯାହା ଜାଣିଥିଲେ ତାହା ପରିହରି ଦେଲେ
ନିଜ ବିବେକ ତାଙ୍କର ଜଣାଗଲା ଭଲେ ।୬।
ସ୍ଥିର ଚିତ୍ତ ସ୍ଥିର ବୁଦ୍ଧି ହୋଇବ ବା କାହୁଁ
ସଫଗ୍ଗ ଫଫଙ୍ଗା ପରି ଅଳ୍ପବିଦ୍ୟା ଯହୁଁ ।୭।
ପରନିନ୍ଦା କରିବାଠା ଉଚିତ ନୁହଇଁ
ପ୍ରଶ୍ନର ଉତ୍ତର ଏବେ ଦେଉଅଛୁ କହି ।୮।
ପଳାଶ ବୃକ୍ଷର କଥା ଶୁଣ ସର୍ବଜନ
ଗୋପସୁତ ମେଳେ କୃଷ୍ଣ କରନ୍ତି ଭୋଜନ ।୯।
ତହୁଁ ବ୍ରହ୍ମା କୋପ ବହି ବତ୍ସ ହରିନେଲି
କମଣ୍ଡଳେ ଭରି ନିଜ ଭୁବନେ ମିଳିଲି ।୧୦।
ଶ୍ରୀକୃଷ୍ଣ ଖୋଜନ୍ତେ ତାହା ବିହନ ଜାଣିଲେ
ବତ୍ସ ମାନଙ୍କୁ ଯେ ନିଜ ଅଙ୍ଗୁ ଜାତ କଲେ ।୧୧।
ବ୍ରହ୍ମା ଆସି ଶ୍ରୀକୃଷ୍ଣଙ୍କ ପାଶେ ପ୍ରଦକ୍ଷିଣ
ବହୁତ ସ୍ତୁତି କରିଲେ ବିନୟେ ଭବେଣ ।୧୨।
ଶ୍ରୀକୃଷ୍ଣ ତାହା ନ ଶୁଣି ଶାପ ଦେଲେ
ପଳାଶ ବୃକ୍ଷ ହୋଇଣ ଜନ୍ମ ହୋ ମର୍ତ୍ତ୍ୟରେ ।୧୩।
ମୋର ସଙ୍ଗେ ତୁହି ଯହୁଁ ବାଦ ଆଚରିଲୁ
ଅପୂଜା ହୋଇ ରହିବୁ ଏ କର୍ମଫଳରୁ ।୧୪।
ସେହିଦିନୁ ବ୍ରହ୍ମା ଯେ ଅପୂଜା ଭବେ ରହି
ପଳାଶ ବୃକ୍ଷ ରୂପରେ ଜନମିଛୁ ମହୀ ।୧୫।
ବୃନ୍ଦାବତୀର ସଖୀଙ୍କ ନାଶନ୍ତେ ଶ୍ରୀହରି
କୃଷ୍ଣଙ୍କୁ ବୋଇଲି ମେହୁ ଅତି କୋପ କରି ।୧୬।

ଏତେ ବଡ଼ ପ୍ରଭୁ ହୋଇ କରିଲୁ ଏମନ୍ତ
କି ଦୋଷ ତୋହର ମୁହିଁ କଲି ହେ ଅଚ୍ୟୁତ ।୧୭।
ତୋ ଯୋଗେ ମୋ ସତୀପଣ ଯେବେ ହେଲ ନାଶ
ମୋତେ ମସ୍ତକରେ ବହିଥିବୁ ହୃଷିକେଶ ।୧୮।
ଏହା କହି ବୃନ୍ଦାବତୀ ଅଗ୍ନିରେ ପଡ଼ିଲ
ଶ୍ରୀକୃଷ୍ଣ ଗୃହାଁନ୍ତେ ସେହୁ ଭସ୍ମ ହୋଇଗଲ ।୧୯।
ତହୁଁ ଶ୍ରୀକୃଷ୍ଣ ଭାବିଲେ ନିଜ ହୃଦୟରେ
ନାରୀହତ୍ୟା ଦୋଷ ଗ୍ରାସିଲାଣି ମୋ ଅଙ୍ଗରେ ।୨୦।
କେମନ୍ତେ ଏ ଦୋଷୁ ମୁହିଁ ହୋଇବି ଉଦ୍ଧାର
ଦିଶୁନାହିଁ କରିବାକୁ କିଛି ପ୍ରତିକାର ।୨୧।
ଏହା ଭାବି ସେହି ବିଭୂତିକୁ ହସ୍ତେ ଧରି
ନିଜ ଅଙ୍ଗେ ବୋଳିଦେଲେ ଆପଣେ ଶ୍ରୀହରି ।୨୨।
ହିମାଗରେ ପହୁଁ ତାକୁ ସ୍ଥାପନା କରିଲେ
ସେ ହିମାଗୁଁ ତିନିବୃକ୍ଷ ଜନମ ଲଭିଲେ ।୨୩।
ତୁଳସୀ ମାଳତୀ ଧାତ୍ରୀ ନାମକୁ ବହିଣ
ତୁଳସୀ ଯେ ବୃନ୍ଦାବତୀ ଅଟଇ ପ୍ରମାଣ ।୨୪।
ମାଳତୀ ଲକ୍ଷ୍ମୀ ରୂପରେ ହେଲେ ପରକାଶ
ଧାତ୍ରୀ ଯେ ଅଇଁଳା ଲକ୍ଷ୍ମୀ ପ୍ରିୟଟି ଅବଶ୍ୟ ।୨୫।
ଆଦର ଧାତ୍ରୀ ଯେ ଦୁର୍ଗା ବୋଲି ହେତୁକରି
ଜଗତର ଜନନୀ ସେ ଅଟନ୍ତି ନିକର ।୨୬।
ବୃନ୍ଦାବତୀ ଶ୍ରୀହରିଙ୍କୁ ଯାହା କହିଥିଲ
ତାହା ଶପଥରେ ସ୍ମରଣ କରି ନନ୍ଦଦଲା ।୨୭।
ମସ୍ତକରେ ତୁଳସୀକି କରନ୍ତି ଧାରରେ
ଯୁଗକୁ ଯୁଗ ଏ କଥା ଅଛି ବିଦ୍ୟମାନେ ।୨୮।

ବଡ଼ବା ଅନଳ ମଧ୍ୟ ଝାଡରଙ୍ଗ ଜାତ
କଳ୍ପବାଞ୍ଛା ବୃକ୍ଷ ବୋଲି ତା ନାମେ ଖ୍ୟାତ ।୨୯।
ତା ପାଦରେ ଲୟ ରଖିଥିବ ଯେଉଁ ଜନ
ସକଳ ଆପଦମାନ ହୋଇବ ମୋଚନ ।୩୦।
ଏବେ ଶୁଣ କାର୍ତ୍ତିକେଶ୍ୱରଙ୍କ ଜନ୍ମ ବାଣୀ
ଠିକ୍ ଠିକ୍ ଶର୍ବେ ଯେମ କଥା କହିଦେବ ପୁଣି ।୩୧।
ଶିବଙ୍କର ନେତ୍ରାନଳେ କାମ ଭସ୍ମ ଗଲା
ରତିଦେବୀ ବହୁତ ଯେ ବିଳାପ କରିଲା ।୩୨।
ଶିବ ପାର୍ବତୀଙ୍କ ପାଶେ ମିଳନକ ପାଇଁ
କ୍ରୋଧ ଗଦ ଗଦ ଭାବେ ଆକୁଳିତ ହୋଇ ।୩୩।
ବହୁତ ପ୍ରକାରେ ତାଙ୍କୁ ପ୍ରବୋଧ କରିଣ
ତାର କ୍ରୋଧ ଶାନ୍ତକଲେ ଦେବ ତ୍ରିଲୋଚନ ।୩୪।
ରତିଦେବୀ ମଣିପଟଣେ ତପ କଲେ ଯାଇ
ସ୍ୱାମୀଙ୍କୁ କେମନ୍ତ ଭାବେ ଲଭିବଟି ସେହି ।୩୫।
ରତିଦେବୀ ଶିବ ଦୁର୍ଗାଙ୍କର ପାଶୁଁ ଯାନ୍ତେ-
ଶିବ ଶିବା ଦୁଇମୂର୍ତ୍ତି ବସିଣ ଏକାନ୍ତେ ।୩୬।
କ୍ରୀଡ଼ା ଆରମ୍ଭନ୍ତେ ରେତ ସ୍ଖଳିତ ହୋଇଲା
ପବନ ଦେବତା ଆସି ତହିଁ ପ୍ରବେଶିଲା ।୩୭।
ଦଇବେ ଇନ୍ଦ୍ର ଇନ୍ଦୁ ତପନ ଜଳପତି
ମରୁତ ଯକ୍ଷରାଜ ତନୟା ଷଡ଼ଯନ୍ତ୍ର ।୩୮।
ଷଡ଼ କୃତ୍ତିକା ଜଳରେ ସ୍ନାହାନ ଯାଇତ
ଉଲଗ୍ନରେ ବୁଲେ ଅଗ୍ନି ତାପୁଥିଲେ ପୁଣ ।୩୯।
ଶିବଙ୍କର ଆଜ୍ଞା ମାନ ସେ ଦେବ ମରୁତ
ତାହାଙ୍କର ପାଶୁ ଆଣିଥିଲା ମହାରେତ ।୪୦।

ତାରୁଥିବା ଅଗ୍ନିରେ ଯେ ନେଇ ପକାଇଲେ
ପବନ ଦେବତା ତାର ସଙ୍ଗତେ ମିଶିଲେ ।୪୧।
କୁମାରୀ ଗର୍ଭରେ ମହାତେଜ ପ୍ରବେଶନ୍ତେ
ତତକାଳେ ଗର୍ଭବନ୍ତ ହେଲା ଅକସ୍ମାତେ ।୪୨।
ବଳ ନୋହିଥିବାରୁ ବହୁତ ଲଜ୍ଜା ହେଲା
ତତକାଳେ ଷଡ଼ପୁଅ ତହିଁ ଉଦ୍‌ଗାଳିଲା ।୪୩।
କମଳା ପୋଟଳ ଭଳି ଜଳରେ ବହନ
ଭସାଇଣ ଦେଲା ସେହି କୁମାରୀ ରତନ ।୪୪।
ଲୌହ ଚୁମ୍ବକ ପରତେ ଲାଗିଲା ସେ ଯାଇଁ
ତେତେବେଳେ ଜ୍ଞାନଶୂନ୍ୟ ହୋଇଥିଲେ ସେହି ।୪୫।
ନିରଞ୍ଜନ ଦେବ ତାଙ୍କୁ ଦିଅନ୍ତି ଜୀବନ
କମଳ ପୋଟଳ ମେଲ୍ହି ବାହାରେ ତକ୍ଷଣ ।୪୬।
ଷଡ଼ମୁଖ ତାହାଙ୍କର ହୋଇଲା ପ୍ରକାଶ
ଶରରୁ ଜନ୍ମାନ୍ତେ ଶର ଜନ୍ମା ଟି ଅବଶ୍ୟ ।୪୭।
କୁମାର ପୂର୍ଣ୍ଣିମା ଦିନ ଗର୍ଭରେ ପଡ଼ିଲେ
କାର୍ତ୍ତିକ ପୂର୍ଣ୍ଣିମାରେ ଯେ ଜୀବନ ଲଭିଲେ ।୪୮।
ତେଣୁକରି କୁମାର ଯେ ବୋଲନ୍ତି ତାହାକୁ
କାର୍ତ୍ତିକେୟ ନାମ ପୁଣି ଅଟେ ସଂସାରକୁ ।୪୯।
ଏକ ଦିନେ ଗଙ୍ଗାକୂଳେ ଦେବ ଲମ୍ବୋଦର
ତପ କରୁଥିଲେ ସାଇଁ ହୋଇଣ ନିଶ୍ଚଳ ।୫୦।
ସେ ସମୟେ ଜନ୍ତୁପତି ଭାବିଲା ତା ମନ
ପାଉଛୁ ହରିବ ଆଜ ଗଣେଶଙ୍କ ପ୍ରାଣ ।୫୧।
ଏହା ଭାବି ଗଣେଶଙ୍କ ପାଖେ ପ୍ରବେଶିଲେ
ତାହା ସଙ୍ଗେ ଗଜପତି ବହୁ ଯୁଦ୍ଧ କଲେ ।୫୨।

ଯମ ଜିଣି ନ ପାରିବା ଦେଖି ଗଣପତି
ଦୁଇ ହସ୍ତେ ଯମକୁ ସେ ଧରିଣ ଝଟନ୍ତି ।୫୩।
ଜାନୁ ତଳେ ଜାକି ଦମି ପୁଣି ତମ କଲେ
ଯମ ରହିଲ ଗଣେଶଙ୍କର ପାଦ ତଳେ ।୫୪।
ମୂଷା ପ୍ରାୟେ ଯମ ଯହୁଁ ନିହ୍ଵବନ ରହିଲ
ସେହିଦିନୁ ମୂଷିକ ବାହନ ତାର ହେଲା ।୫୫।
ଏବେ ଶୁଣ କନ୍ଦର୍ପର ଜନମ ବୃତ୍ତାନ୍ତ
ଶିବ ନେତ୍ରାନଳେ ଜଳିଯାନ୍ତେ ମନମଥ ।୫୬।
ରତିଦେବୀ ନିଷ୍ଠଳରେ ତପ ଆଚରିଲେ
ଶମ୍ବରାସୁର ତାହାକୁ ହରିନେଲା ବେଗେ ।୫୭।
ରୁକ୍ମିଣୀଙ୍କ ଗର୍ଭେ ତେଣେ କାମ ଜନମିଲା
ମାୟାରେ ଶମ୍ବର ଦୈତ୍ୟ ମୀନ ରୂପ ହେଲା ।୫୮।
କାମଦେବଙ୍କୁ ମଞ୍ଜୁଷା ମଧ୍ୟରେ ପୂରାଇ
ଦ୍ୱାରକାପୁରୁ ଜଳରେ ମେଲିଦେଲେ ନେଇ ।୫୯।
ମାୟା ମୀନ ଏଣେ ଜଳ ମଧ୍ୟେ ଭ୍ରମୁଥିଲା
ଭକ୍ଷ୍ୟଦ୍ରବ୍ୟ ଭାବି ମଞ୍ଜୁଷାକୁ ଗିଳିଦେଲା ।୬୦।
କୈବର୍ତ୍ତ ଜାଲେ ସେ ମୀନ ପଡ଼ନ୍ତେଣ ଯାଇ
ଶମ୍ବରାସୁର ପାଶରେ ତାକୁ ଦେଲା ନେଇ ।୬୧।
ଶମ୍ବର ପୁରରେ ମୀନ କାଟନ୍ତେ ବହନ
ମୀନ ଉଦରୁ ବାଳକ ମିଳିଲାକ ପୁଣ ।୬୨।
ମୀନ ଉଦରରୁ ସେହୁ ହୁଅନ୍ତେ ପ୍ରାପତ
ମୀନକେତନ ନାମ ତା କରିଲେ ବିଖ୍ୟାତ ।୬୩।
ଶମ୍ବର ଦୈତ୍ୟ ବିନାଶ ହୋଇଲା ତା କରେ
ରତି କାମ ଦୁହେଁ ତହୁଁ ଶଦ୍ଧାଶଦ୍ଧି ହେଲେ ।୬୪।

ଗଜେନ୍ଦ୍ର ହରଣ କାଳେ ହସ୍ତିନା ଦୁଆର
ବନ୍ଧ କରି ଦେଇଥିଲେ ଦେବ କାମପାଳ ।୬୫।
ଦୁଷ୍ଟ ପୁତ୍ର କୃଷ୍ଣବାର୍ଯ୍ୟ ହୋଇଣ ଜନମ
ଅଚନ୍ତାକର ବୋଲିଣ ହେଲା ତାର ନାମ ।୬୬।
ଖଲ୍ଲିକାର ପଦ ମୋହ୍ମ ପୁତ୍ର ପାଇଥିଲା
ତେଣୁ ଜଉଶାଳାକୁ ସେ ବାଠ ଫିଠାଇଲା ।୬୭।
ଆକାଶ ଖୁରିଆଙ୍ଗୁଳ ଅଟେ ବିଦ୍ୟମାନ
ଦୁବେଟି ନକ୍ଷତ୍ର ଚକ୍ଷି ଥାନ୍ତି ପ୍ରତିଦିନ ।୬୮।
ମେଘ ବରଷଇ ଦଶଧାରରେ ପ୍ରମାଣ
ଜଳ ଚକ୍ରେ ହେତୁକରି ବୁଝ ହେ ସୁଜନ ।୬୯।
ପୁଷ୍ପକ୍ଷେତ୍ର ଏକହାତ ଦେଉଳ ମଧ୍ୟରେ
ଏକ ଦଅଁ ଛନ୍ତି ବାରହାତ ତାଙ୍କଠାରେ ।୭୦।
ଦକ୍ଷିଣ ପାର୍ଶ୍ୱକୁ ଗଲେ ନୟନେ ଦେଖିବ
ତେବେ ସଂଶୟ ତୁମର ବିନାଶ ହୋଇବ ।୭୧।
ଭୁଷଣ୍ଡି ବଂଶରୁ କାକମାନେ ଜନ୍ମ ହେଲେ
କୋଇଲର ଜନ୍ମ ଅଟେ ବନିତା ଅଂଶରେ ।୭୨।
ମେନା ଶାପୁ କୋଇଲି ଯେ ଡିମ୍ବ ନ ଫୁଟାଇ
କାକ ବସାରେ ତାହାକୁ ରଖିଆସେ ନେଇ ।୭୩।
ଅଜ୍ଞାନୀ କାକ ତା କେଭେଁ ନ ପାରଇ ଜାଣି
ତାର ନିଜ ଡିମ୍ବ ବୋଲି ଫୁଟାଏ ସେ ପୁଣି ।୭୪।
ଛୁଆ ଜନ୍ମ ହୋଇ କାକ ପାଶରେ ବସନ୍ତେ
'କା' ଶବ୍ଦ ନ ବୋଲି 'କୁ' ଭାଷଇ ଅନୁବ୍ରତେ ।୭୫।
ତେଣୁ କାକମାନେ ତାକୁ କରିଦିଅନ୍ତି ଦୂର
କୋଇଲିଙ୍କ ସଙ୍ଗେ ଯାଇ ମିଳଇ ଚତୁର ।୭୬।

ଅଶ୍ୱମାନଙ୍କ ପକ୍ଷକୁ ଅଶ୍ୱିନୀ କୁମାର
ଛୁଟେ ତାଙ୍କ ପକ୍ଷ ଛେଦ ଥିବାରୁ ନକର ।୭୭।
ଅଶ୍ୱମାନେ ଏବେ ଆଉ ଉଡ଼ି ନ ପାରନ୍ତି
ସାଧୁ ସୁଜ୍ଞଜନେ ଏହା ଥାଅ ମନେ ଚିନ୍ତି ।୭୮।
ଦ୍ୱାଦଶ ଅଙ୍ଗୁଳ ଅଟେ ସମୁଦ୍ର ବିସ୍ତାର
ତିନି ନଦୀରୁ ନିରତେ ଯେନଥାଇ ଜଳ ।୭୯।
ଜଉଶାଳା ଘର ଅଛି ଯୁକ୍ତି ପ୍ରମାଣ
ଦୁର୍ଯ୍ୟୋଧନ ଆଜ୍ଞାରେ ରଚନ୍ତି ପୁରଞ୍ଜନ ।୮୦।
ପଞ୍ଚକୃଷ୍ଣ ସପ୍ତ ରାଧା ଶିବ ଏବେ ଶୁଣ
ଯେମନ୍ତ ଶିବରେ ନେମସ୍ତ ହୋଇଲେ ଜନମ ।୮୧।
ମହାପ୍ରଳୟ କାଳରେ ଶୂନ୍ୟ ନିରାକାର
ଯୋଗନିଦ୍ରା ଯାନ୍ତେ ନୃପ ଦେଖିଲେ ଅପାର ।୮୨।
ଯୋଗମାୟାଙ୍କୁ ସ୍ୱପନେ ଦେଖିବାରୁ ଯେହ୍ନି
ହୃଦୟ ମନ ତାଙ୍କର ହୋଇଗଲା ମୋହ୍ନି ।୮୩।
ସ୍ୱପ୍ନରେ ରେତ ସ୍ଖଳିତ ହୋଇଲା ତାଙ୍କର
ସେ ରେତ ପଞ୍ଚ ଭାଗରେ ହେଲା ପଦ୍ମେଁ ସ୍ଥିର ।୮୪।
ସେ ପଞ୍ଚରୁ ପଞ୍ଚକୃଷ୍ଣ ଜନମ ଲଭିଲେ
ଯୋଗମାୟାଙ୍କ ରୂପକୁ ଅନାଦି ଦେଖିଲେ ।୮୫।
ପୁଣି ଯୋଗମାୟା ସ୍ୱପ୍ନେ ବିସ୍ଖଳିତ ହୋଇ
ତାଙ୍କ ଅଙ୍ଗରେର ତହୁଁ ସ୍ଖଳିତ ହୁଅଇ ।୮୬।
ସେ ରେତ ସପ୍ତ ଭାଗରେ ପଦ୍ମେଁ ପ୍ରବେଶିଲା
ହିଭାଗ ମଧ୍ୟରୁ ତିନି ଆକୃତି ହୋଇଲା ।୮୭।
ତିନି କନ୍ୟା ଜନମିଲେ ତାଙ୍କ ନାମ ଶୁଣ
ସୁମେଧ ସରଧା ରାଧା ବୋଲି ସେ ପ୍ରମାଣ ।୮୮।

ପଞ୍ଚକୃଷ୍ଣ ସପ୍ତ ରାଧା ଏ ପ୍ରକାର ହୋଇ
ସୁପଣ୍ଡିତମାନେ ବୁଝ ଚିତ୍ତବୃତ୍ତି ଦେଇ ।୮୯।
ଅଷ୍ଟ ଅଇଶ୍ୱର୍ଯ୍ୟ କଥା ଶୁଣ ଦେଇ ମନ
ଏକରେ ପ୍ରେମ ଦ୍ୱିତୀୟେ ଅଟଇ ସକାମ ।୯୦।
ତୃତୀୟେ ମାଧୂର୍ଯ୍ୟ ଚତୁର୍ଥରେ ବିଦ୍ୟାପୁଣ
ପଞ୍ଚମରେ ଧନ ଷଷ୍ଠରେ ଯେ ଦାରା ଜାଣ ।୯୧।
ସପ୍ତମରେ ପୁଣ ଅଷ୍ଟମେ ସୁରୁଚ ହୋଇ
ଅଷ୍ଟ ଅଇଶ୍ୱର୍ଯ୍ୟମାନ ଅଟନ୍ତି ଯେ ଏହି ।୯୨।
ରବି ଚନ୍ଦ୍ର ଦୁହିଁଙ୍କର ଗୁରୁ ବିଶ୍ୱକେଶନ
କେତେବେଳେ ନୁହଇ ଏ ଅନ୍ୟଥା ବଚନ ।୯୩।
ଶୁଣିଲେକ ସଦ୍ଭକ୍ତଜନମାନେ ହରଷରେ
ଗାୟକ ଭାଇ ଏ ସ୍ଥାନେ ଯା ପଚାରିଥିଲେ ।୯୪।
ତାହାର ଉତ୍ତର ମୁହିଁ କହିଲି ବୁଝାଇ
ଯାହା ମୋତେ ଜଣାଥିଲା ତାହା ଦେଲି କହି ।୯୫।
ଶ୍ୟାମସୁନ୍ଦର ଭାଷଇ ଅତି ହରଷରେ
ହରି ହରି ବୋଲ ଏ ଭକ୍ତଜନେ ଏ ସ୍ଥାନରେ ।୯୬।

—:*:—

( ପ୍ରଥମ ଭାଗ ସମାପ୍ତ )

ମୁଦ୍ରାକର—ନାରାୟଣ ବେହେରା, "ଚଣ୍ଡୀମାତା ପ୍ରିଣ୍ଟର୍ସ"
ଅଲିଶା ବଜାର, କଟକ-୭୫୩୦୦୨

# ବିଜ୍ଞାପନ

| | |
|---|---|
| ଅଚ୍ୟୁତାନନ୍ଦଙ୍କ ଜନ୍ମ ଶରଣ | ଠ ୬ |
| ବ୍ରହ୍ମଜ୍ଞାନତତ୍ତ୍ୱ ବା ବ୍ରହ୍ମକୁଣ୍ଡଳୀ | ଠ ୮ |
| ଗୋପବନ୍ଧୁ ଓ ଅନାକାର ଗୀତା | ଠ ୪ |
| ଚୂର୍ଣ୍ଣ ମାଳିକା | ଠ ୮ |
| ଚଉଶପଟଳ | ଠ ୬ |
| ଛୟାଳିଶପଟଳ | ଠ ୧୦ |
| ଭବିଷ୍ୟତ ମାଳିକା | ଠ ୧୪ |
| ଅଚ୍ୟୁତାନନ୍ଦଙ୍କ ବଉଦ ଦଶବଂଶ | ଠ ୩୦ |
| ଦଶପଟଳ ମାଳିକା | ଠ ୬ |
| ଜାଇଫୁଲ ମାଳିକା | ଠ ୩ |
| ପରମ ସଂହିତା | ଠ ୮ |
| ଶ୍ରୀଗୁରୁଭକ୍ତି ଗୀତା | ଠ ୪୪ |
| ବ୍ରହ୍ମ ଏକାକ୍ଷର ଗୀତା | ଠ ୮ |

